ISSN: 2456-9194, Vol. I, Issue. II, Sept-2017

ପ୍ରତ୍ୟୟ

(Journal of Odia Language, Culture and Science)

# ଶକ୍ତି ଉପାସନାରେ ଲୋକ ସାହିତ୍ୟ: ଓଷା ଓ ବ୍ରତ

ଡକ୍ଟର ସୁମନ୍ତ୍ର ନାଏକ
ଅଧ୍ୟାପକ, ଓଡ଼ିଆ ବିଭାଗ,
ଧରଣୀଧର ସ୍ୱୟଂଶାସିତ ମହାବିଦ୍ୟାଳୟ
E-mail: naik.sumantra2@gmail.com

***ସଂକ୍ଷିପ୍ତ ପରିଚୟ*** *- ଶକ୍ତି ଉପାସନା ଭାରତୀୟ ଐତିହ୍ୟ ସଂସ୍କୃତି ତଥା ପରମ୍ପରାରେ ଏକ ମହାନ ଚେତନା । ଭାରତରେ ମାତୃପୂଜା କୈନ୍ଦ୍ରିକ ପରଂପରା ଏକ ଅନନ୍ୟ ପରଂପରା । ଭାରତୀୟ ପରଂପରାରେ ନାରୀକୁ ଦିଆଯାଇଛି ଉଚ୍ଚାସନ । ଏଠାରେ ନାରୀ ଶକ୍ତିର ପ୍ରତୀକ । ଶକ୍ତି ଉପାସନା ମାଧ୍ୟମରେ ନାରୀଶକ୍ତି ମହତ୍ତ୍ୱକୁ ସମାଜରେ ପ୍ରତିଷ୍ଠିତ କରାଯାଇଛି । ନାରୀଶକ୍ତି ଭାରତୀୟ ପରମ୍ପରା ରେ ଦୈବୀଶକ୍ତିର ଦ୍ୟୋତକ । ଏହି ଦେବୀ ଶକ୍ତିର ପ୍ରଚାରର ଓ ନାରୀକୁ ଗୁରୁତ୍ୱ ଦେବାରେ ଭାରତୀୟ ତଥା ଉତ୍କଳୀୟ ପରଂପରାରେ ଓଷା ବ୍ରତର ଭୂମିକା ଗୁରୁତ୍ୱପୂର୍ଣ୍ଣ । ପ୍ରାଚୀନ କାଳରୁ ଲୋକ ମୁଖରେ ପ୍ରଚଳିତ ଦୈବୀଶକ୍ତି ତଥା ଦେବୀ ଶକ୍ତିର ପ୍ରଭାବରେ ସମାଜରେ କିଭଳି ବ୍ୟାପକ ପରିବର୍ତ୍ତନ ତଥା ବ୍ୟକ୍ତି ଜୀବନରେ ଦୁଃଖ ବିଷାଦ ଯନ୍ତ୍ରଣାର ଦୂର ହୋଇଥାଏ ତାହା ଓଡିଶାରେ ପ୍ରଚଳିତ ପ୍ରତ୍ୟେକ ଓଷା ତଥା ବ୍ରତ ପାଳନରେ ନିହିତ ଅଛି । ଏହା ସମାଜର ଅନନ୍ତ ବିଶ୍ୱାସ, ତେଣୁ ପ୍ରତ୍ୟେକଟି ଓଷା ବ୍ରତରେ ଏହି ଦୈବୀଶକ୍ତିର ପରାକାଷ୍ଠା କିପରି ନିହିତ ଅଛି ତଥା ଏହାର ପାଳନ ବିଧି ଓ ସୁଫଳ ପ୍ରାପ୍ତି ସମ୍ପର୍କରେ ପ୍ରବନ୍ଧରେ ଉପସ୍ଥାପିତ ହୋଇଅଛି । ପ୍ରବନ୍ଧଟି ଲୋକସାହିତ୍ୟକୁ ଭିତ୍ତିକରି ଲିଖିତ ।*

***ପ୍ରମୁଖ ଶବ୍ଦାବଳୀ*** *(Keywords) - ମାତୃ ପୂଜା, ଶକ୍ତି ଉପାସନା, ପର୍ବପର୍ବାଣୀ, ଉଷାବ୍ରତ, ସଂସ୍କୃତି*

## ଉପକ୍ରମ:

ଭାରତ ବିଶ୍ୱରେ ସ୍ୱତନ୍ତ୍ର କାରଣ, ଭାରତ ତାର ଐତିହ୍ୟ,ସଂସ୍କୃତି ଓ ପରମ୍ପରାକୁ ପାଥେୟ କରି ଖୁବ୍ ବଳିଷ୍ଠ । ଏହି ଅନନ୍ୟ ସଂସ୍କୃତି ଓ ପରମ୍ପରାରେ ଶକ୍ତି ଉପାସନା ଏକ ମହାନ ଚେତନା । ଭାରତରେ ଶକ୍ତି ଉପାସନାର ପଟ୍ଟାନ୍ତର ନାହିଁ । ପ୍ରାଚୀନ ମାତୃ ପୂଜା କୈନ୍ଦ୍ରିକ ପରମ୍ପରା ଏହି ଭାରତ ବର୍ଷରେ ପ୍ରଚ୍ଛଳିତ ଥିଲା ବୋଲି ପ୍ରତ୍ନତାତ୍ତ୍ୱିକ ଗବେଷଣାରୁ ପ୍ରମାଣ ମିଳିଥାଏ । ବେଦ ତଥା ବେଦୋତ୍ତର ସାହିତ୍ୟରେ ମଧ୍ୟ ଶକ୍ତି ଉପାସନା ବର୍ଣ୍ଣିତ । ଶକ୍ତି ଉପାସନାର ଗୁରୁତ୍ୱକୁ ନେଇ ଶାସ୍ତ୍ରରେ କୁହାଯାଇଛି-

" ଶିବୋଽପି ଯାତି ୟୟାଶକ୍ୟା ବିବର୍ଜିତଃ"

ଅର୍ଥାତ୍ - ଶକ୍ତିବିନା ଶିବ ମଧ୍ୟ ଶବ ।

ଉତ୍କଳ ପ୍ରଦେଶର ପ୍ରସିଦ୍ଧି ଶାକ୍ତ କ୍ଷେତ୍ର ଭାବରେ । ପ୍ରାଚୀନ କାଳରୁ ଉତ୍କଳରେ ବିଭିନ୍ନ ପରିପ୍ରେକ୍ଷୀରେ ଶକ୍ତି ଉପାସନାର ମହିମା ବିସ୍ତାର ଲାଭ କରିଅଛି । ଓଡିଶାର ସାଂସ୍କୃତିକ ଇତିହାସ ଓ ସଂସ୍କୃତି ପରଂପରାରେ ଶକ୍ତି ମହିମାର ମହତ୍ତ୍ୱ ଖୁବ୍ ପ୍ରଭାଶାଳୀ । ଓଡିଶାର କଳା ସ୍ଥାପତ୍ୟ,ସାହିତ୍ୟ ଓ ଲୋକ ବିଶ୍ୱାସରେ ଏହାକୁ ଅନୁଭବ କରାଯାଇପାରେ । ହୁଏନ୍ସା ମଧ୍ୟ ତାଙ୍କ ବିବରଣଳୀରେ ଓଡିଶାର ଶକ୍ତି ଉପାସନାର ପରଂପରା କଥା ଉଲ୍ଲେଖ କରିଛନ୍ତି । ଓଡିଶାରେ ପ୍ରଚଳିତ ପର୍ବପର୍ବାଣୀ, ଓଷା ବ୍ରତରେ ଶକ୍ତି ପରମ୍ପରା ବିଶେଷ ଭାବରେ ନିହିତ । ଓଡିଶାରେ ଶକ୍ତି ଉପାସନାର ସମସ୍ତ ପୂଜାବିଧି,ଦର୍ଶନ ଓ ତତ୍ତ୍ୱ ଲୋକ ବିଶ୍ୱାସର ଭିତ୍ତି ଉପରେ ପ୍ରତିଷ୍ଠିତ । ଲୋକ ବିଶ୍ୱାସ ଲୋକ ସାହିତ୍ୟର ଅବାରିତ ଧାରାର ପ୍ରମୁଖ ବିଭବ । ଆଉ ଲୋକ ସାହିତ୍ୟର ପ୍ରମୁଖ ଅଙ୍ଗ ଲୋକଗୀତ ହିଁ ଜନ ଜୀବନ ଓ ଶକ୍ତି ମାହାତ୍ମ୍ୟର ସଂଯୋଗ ସେତୁ ।

ଲୋକ ସାହିତ୍ୟ ସୃଷ୍ଟିରେ ଲୋକଙ୍କ ପ୍ରଥା,ପରମ୍ପରା,ଜୀବନ ଜୀବିକା,ସାମାଜିକ ଜୀବନ ଓ ସଂସ୍କୃତିର ବଳିଷ୍ଠ ଛାପ । ସାମାଜିକ ଜୀବନର ଶାଶ୍ୱତ ଉତ୍ସ ନିହିତ । ଲୋକ ଜୀବନର ଅପରିହାର୍ଯ୍ୟ ଏହି ଲୋକ ଭିତରେ ଅହୁରି ଭରି ରହିଛି ଧର୍ମୀୟ ଚେତନା ସଂପର୍କରେ

କୁଞ୍ଜବିହାରୀ ଦାଶ କୁହନ୍ତି- ଲୋକ ଗୀତର ସୂତ୍ରଦେଇ ସମଗ୍ର ସମାଜ ଆଖି ଆଗରେ ନାଚିଯାଏ । ତାଛଡା ଲୋକର ଧର୍ମ ଜୀବନ ଅଛି, ଧର୍ମ ପରଲୋକ ଲାଗି ଇହଲୋକର ପାଣ୍ଠି । ପାରଂପରିକ ଭାବରେ ଜୀବନର ନିୟନ୍ତା, ଗତିମୁକ୍ତି ଦାତା । ଦେବପୂଜା ଧର୍ମାଚରଣର ମୁଖ୍ୟ ସ୍ୱରୂପ, ଦେବତା କାମନା ପୂରଣର ମୁଖ୍ୟ ଉପାୟ । ପୂଜା ସକାମ । ସ୍ତୁତି ଆରାଧନାର ସ୍ତରେ ସ୍ତରେ ଫଳାକାଂକ୍ଷା ।

ଉତ୍କଳୀୟ ସମାଜ ଏହା ବିଶ୍ୱାସ କରେ ଯେ, ଦେବୀ ଉପାସନା ତଥା ପୂଜାର୍ଚ୍ଚନା ଦ୍ୱାରା ତାର ମଙ୍ଗଳ ବିଧାନ ହୋଇଥାଏ । ନିଷ୍ଠାର ସହିତ ଏହାକୁ ପାଳନ କଲେ ଭବିଷ୍ୟତରେ ନିଜ ପରିବାର ତଥା ଜ୍ଞାତିକୁଟୁମ୍ବର ଇଷ୍ଟ ଖଣ୍ଡନ ହେବା ସହିତ ଜୀବନ ସୁଖମୟ ହୋଇଥାଏ । ଏହି ବିଶ୍ୱାସକୁ ଆଧାର କରି ଉତ୍କଳୀୟ ସମାଜ ପର୍ବପର୍ବାଣୀ ଓଷା ବ୍ରତ ଆଦି ଉତ୍ସାହର ସହିତ ପାଳନ କରିଥାଏ । ସେଥିପାଇଁ ଉଷାବ୍ରତ ପର୍ବପର୍ବାଣୀରେ ଓଡିଶା ସଦା ମୁଖରିତ । ଓଡିଶାରେ ପ୍ରଚଳିତ ଥିବା ଲୋକ କାହାଣୀ ଓ ଲୋକ ବିଶ୍ୱାସକୁ ଆଧାର କରି ଓଡିଶା ଜନଜୀବନ ବିଭିନ୍ନ ସମୟରେ ବିଭିନ୍ନ ଦେବ ଦେବୀଙ୍କର ଉପାସନା କରିଥାଏ । କେତେବେଳେ ଚନ୍ଦ୍ର ଭାଗାରେ ବୁଡ ଦେବାଠାରୁ ଆରମ୍ଭକରି ପୂର୍ଣ୍ଣିମାର ଜହ୍ନକୁ କଇଁଫୁଲରେ ସଜେଇ ପୂଜାର୍ଚ୍ଚନାକରେ ତ ଆଉ କେତେବେଳେ ସ୍ୱାମୀର ମଙ୍ଗଳ ବିଧାନ ପାଇଁ ସାବିତ୍ରୀ ଅମାବାସ୍ୟାଠାରୁ ଆରୁ ପୁଅର ମଙ୍ଗଳ ପାଇଁ ଦ୍ୱିତୀୟା ଉଷା ପର୍ଯ୍ୟନ୍ତ ସେ ନିଷ୍ଠାର ସହିତ ଉପାସନା ଓ ପାଳନ କରିଥାଏ ।

ପ୍ରାଚୀନ ଉତ୍କଳୀୟ ସମାଜ ଓ ସାହିତ୍ୟରେ ଶକ୍ତି ଉପାସନାର ପ୍ରଭାବ ଓ ପ୍ରତିଫଳନ ରହିଛି । ବିଶେଷତଃ ସାହିତ୍ୟରେ ଶକ୍ତି ଉପାସନାର ପ୍ରଭାବ ଖୁବ୍ ବ୍ୟାପକ । ବିଶେଷତଃ ସଂସ୍କୃତ ସାହିତ୍ୟର ପ୍ରଭାବରେ ଶକ୍ତି ଉପାସନାର ମାହାତ୍ମ ଓଡିଆ ସାହିତ୍ୟରେ ପରିଦୃଶ୍ୟମାନ ହୋଇଥାଏ । ବିଶେଷତଃ ଏହାର ପ୍ରଭାବ କାବ୍ୟ,ବ୍ରତକଥା,ଦେବୀ ଉପାଖ୍ୟାନ,ଚଉତିଶା ଜଣାଣ ଆଦିରେ ଶକ୍ତି ଉପାସନାର ପ୍ରବାହ ଓ ପ୍ରତିଫଳନ ଦୃଷ୍ଟି ଗୋଚର ହୋଇଥାଏ । ଓଡିଶାର ଲୋକ ସାହିତ୍ୟରେ ଶକ୍ତି ଉପାସନାର କଥା ଖୁବ୍ ବ୍ୟାପକ ଭାବରେ ପରିଦୃଶ୍ୟମାନ ହୁଏ । ଉଷାବ୍ରତ, ମନ୍ତ୍ର,ଲୋକଗୀତ,ପାଟୁଆନାଚ, ଦଣ୍ଡନାଚ,ଘୋଡାନାଚ ଆଦିରେ ଶକ୍ତି ଉପାସନାର ଚିତ୍ର ଓ ପ୍ରଭାବ ଖୁବ୍ ନିବିଡ ।

ଓଷା ଓ ବ୍ରତ ଓଡିଆ ସଂସ୍କୃତି ଓ ପରମ୍ପରାର ପ୍ରଗାଢ ଦେବୀନୁଗତ୍ୟାତାର ଦ୍ୟୋତକ । ଏହି ଓଷା ଓ ବ୍ରତର ଭକ୍ତମାନେ ଲକ୍ଷ୍ମୀ, ଦୁର୍ଗା, ମଙ୍ଗଳା, କାଳୀ, ରାଧା, ଗୌରୀ ତଥା ସାବିତ୍ରୀ ପ୍ରଭୃତି ଦେବୀଙ୍କୁ ନିଷ୍ଠାର ସହ ଆରାଧନା କରିଥାଆନ୍ତି । ଏହି ଦେବୀ ଉପାସନାର ମୂଳ ଉଦ୍ଦେଶ୍ୟ ହେଉଛି ପରିବାରର ମଙ୍ଗଳ ବିଧାନ, ସୁଗୁଣ ସମ୍ପନ୍ନ ପତି ଲାଭ, ପତିର ଦୀର୍ଘାୟୁ କାମନା, ସୁସନ୍ତାନ ଲାଭ, ଯଶ,ସଂପତି ଲାଭ,ରୋଗ ମୁକ୍ତି ତଥା ଇଷ୍ଟ ପ୍ରାପ୍ତି । ଉଷା ଗୁଡିକ ସ୍ତ୍ରୀ ଲୋକମାନଙ୍କ ଦ୍ୱାରା ପାଳିତ ହେଉଥିବା ବେଳେ ବ୍ରତକୁ ଉଭୟ ପୁରୁଷ ଓ ସ୍ତ୍ରୀମାନେ ପାଳନ କରିଥାନ୍ତି । ମୁଖ୍ୟତଃ ବ୍ରତ ପାଳନ ସମୟରେ ଏକ ସୂତାକୁ ଧାରଣ କରାଯାଏ । ଏହି ସୂତା କିଛି ସୂତାଖିଅରେ ଟିକିଏ ମୋଟା ଆକାରର ହୋଇଥାଏ । ପ୍ରତ୍ୟେକ ଓଷା ଓ ବ୍ରତ ପଛରେ ନିହିତ ଥାଏ ଗୋଟିଏ ଗୋଟିଏ ଲୋକ କାହାଣୀ । ଯେଉଁ ଲୋକ କାହାଣୀରେ ଥାଏ ଦେବୀ ମହାତ୍ମ୍ୟର ଅଲୌକିକ ଶକ୍ତିର ଅବତାରଣା ।

ଏଠାରେ କେତେକ ଉଷାବ୍ରତର ପାଳନ ବିଧି ସଂମ୍ପର୍କରେ ସୂଚନା ସହିତ ଦେବୀ ମାହାତ୍ମ୍ୟର କଥାକୁ ଉପସ୍ଥାପନା କରାଗଲା ।

**I. ମଙ୍ଗଳବାର ଓଷା-**

ମଙ୍ଗଳବାର ଦିନ ପାଳିତ ହେଉଥିବା ଏହି ଓଷାକୁ ମଙ୍ଗଳା ଓଷା କୁହାଯାଇଥାଏ । ଏହି ଓଷାର ଦେବୀ ହେଉଛନ୍ତି ମା ମଙ୍ଗଳା । ଏହି ଓଷାମାନଙ୍କ ମଧ୍ୟରେ ରହିଥାଏ ନିଶା ମଙ୍ଗଳବାର ଓଷା, ଚୈତ୍ର ମଙ୍ଗଳବାର ଓଷା ଓ ଷୋଳପାଳି ମଙ୍ଗଳବାର ଓଷା । ଏହି ଓଷାକୁ ମୁଖ୍ୟତଃ ସ୍ତ୍ରୀଲୋକମାନେ ପାଳନ କରନ୍ତି । ପ୍ରତ୍ୟେକ ଉଷାବ୍ରତର ପାଳନ ଆଢୁଆଳରେ ଏକ କାହାଣୀ ରହିବାପରି ନିଶା ମଙ୍ଗଳବାର ପାଳନ ଆଢୁଆଳରେ ମଧ୍ୟ ଏକ କାହାଣୀ ନିହିତ ଅଛି । ମା' ମଙ୍ଗଳାଙ୍କ କୃପା ଲାଭ ,କରି ସନ୍ତାନ ଲାଭ ଆଶାରେ ଏହି ଉଷା ପାଳନ କରାଯାଏ । କାରଣ କାହାଣୀନୁଯାଇ ରାଜା ବିକ୍ରମାଦିତ୍ୟଙ୍କ ସାନ ରାଣୀଙ୍କ କୌଣସି ସନ୍ତାନ ହେଉନଥିଲେ । ଫଳରେ ସେ ମଙ୍ଗଳାଙ୍କ ଆଶୀର୍ବାଦ ଲାଭ କରି ପୁତ୍ରବତୀ ହୋଇଥିଲେ ଏବଂ ବିକ୍ରମାଦିତ୍ୟଙ୍କ ରାଜ୍ୟର ମଲ୍ଲିକା ଘାସିଆଣି ମଧ୍ୟ ମଙ୍ଗଳାଙ୍କ କୃପାରୁ ଆଣ୍ଠୁକୁଡୀ ଦୋଷ ମୁକ୍ତ ହୋଇ ବହୁ ସନ୍ତାନ ଲାଭ କରିଥିଲେ । ସେହିପରି ଚୈତ୍ର ମଙ୍ଗଳବାର ଓଷାର ଆଢୁଆଳରେ ମଧ୍ୟ ଏକ କାହାଣୀ ରହିଅଛି । ଜନୈକ ଚଣ୍ଡାଲୁଣୀ ଥିଲା, ସେ ମା'ମଙ୍ଗଳାକୁ ନିଷ୍ଠାର ସହ ଭକ୍ତି ଉପାସନା କରେ । ତାର ଛଅଟି ପୁଅ । ଏମାନେ ସଭିଏଁ ଜାଆଁଳା ସନ୍ତାନ ଏବଂ ଗୋଟିଏ ଝିଅ । ସେହି ରାଜ୍ୟର ରାଜାଙ୍କର କୌଣସି ସନ୍ତାନ ସନ୍ତତି ନଥିଲେ । ସେ ଆଣ୍ଠୁକୁଡା ଥିଲେ । ନିଜର ସନ୍ତାନ ନଥିବାରୁ ହିଂସା ଓ ଈର୍ଷାନ୍ୱିତ ହୋଇ ଚଣ୍ଡାଲୁଣୀର ସମସ୍ତ ସାତଜଣ ସନ୍ତାନକୁ ହତ୍ୟା କରିବାର ପ୍ରବଳ ଚେଷ୍ଟା କରିଥିଲେ । ସେହି ଚଣ୍ଡାଲୁଣୀର ସନ୍ତାନ ମାନଙ୍କୁ ସେ ଖଣ୍ଡାରେ ହାଣିବାକୁ ଚେଷ୍ଟା କରିଥିଲେ । ଖାତ ଖୋଳି ସେଥିରେ ପୋତିବାକୁ ଚେଷ୍ଟା କରିଛି ପୁଣି ଜଉ ନିର୍ମିତ ଘରରେ ଭର୍ତ୍ତିକରି ପୋଡିବାକୁ ଚେଷ୍ଟା କରିଥିଲେ । ଏହିପରି ଭାବରେ ଅନେକ ଉପାୟରେ ମାରିବାକୁ ଚେଷ୍ଟା କରି ମଧ୍ୟ କାହାର କୌଣସି କ୍ଷତି ରାଜା କରିପାରି ନାହିଁ । ସବୁ ସମୟରେ ମା' ମଙ୍ଗଳା ସମସ୍ତ ସନ୍ତାମାନଙ୍କୁ ରକ୍ଷା କରିଛନ୍ତି । ରାଜାଙ୍କ ଦ୍ୱାରା ବିଭିନ୍ନ ଉପାୟରେ ମୃତ୍ୟୁ ବରଣ ପ୍ରାୟ ସନ୍ତାନମାନେ ମଙ୍ଗଳାଙ୍କ ଆଶୀର୍ବାଦରେ ପୁନର୍ଜୀବନ ଲାଭ କରିଛନ୍ତି । ରାଜା ଚଣ୍ଡାଲୁଣୀର

କୌଣସି କ୍ଷତି କରି ନକରି ପାରିବାରୁ ମା'ମଙ୍ଗଳାଙ୍କର ଶରଣାପନ୍ନ ହୋଇ ନିଜ ରାଜ୍ୟରେ ମଙ୍ଗଳା ଓଷାର ପ୍ରଚଳନ କରାଇ ଛନ୍ତି ଏବଂ ମା'ମଙ୍ଗଳାଙ୍କ ଆଶୀର୍ବାଦ ଲାଭ କରି ସନ୍ତାନ ପ୍ରାପ୍ତ ହୋଇଛନ୍ତି ।

ସେହି ପରି ଷୋଳ ମଙ୍ଗଳବାର ଓଷା ଷୋହଳଟି ମଙ୍ଗଳବାର ଲାଗ ଲାଗ ଧରି ଉପାସନା କରାଯାଏ । ଏହି ଓଷାରେ ମା' ମଙ୍ଗଳାଙ୍କ ଅଲୌକିକ ମାହାତ୍ମ୍ ବର୍ଣ୍ଣିତ । ଏହି ଓଷା ଗୁଡିକରେ ମୁଖ୍ୟତଃ ମାଆଙ୍କର କରୁଣା,ସ୍ନେହ ଓ ଦୟାର ମାହାତ୍ମ୍ ବର୍ଣ୍ଣିତ ହୋଇଥାଏ । ଏହି ଓଷା ପାଳନ କରୁଥିବା ସ୍ତ୍ରୀଲୋକମାନେ ମଙ୍ଗଳବାର ପ୍ରାତଃ ସ୍ନାନ କରି ମାଆଙ୍କର ପୂଜା ଅର୍ଚ୍ଚନା କରିଥାଆନ୍ତି। ଭୋଗ ଭାବରେ ନଡିଆ କଦଳୀ ସହିତ ମନ୍ଦାର ଫୁଲ ଓ ସିନ୍ଦୁର ସ୍ଥାପିତ ହୋଇଥିବା ଘଟିରେ ଅର୍ପଣ କରନ୍ତି । ଆହୁରି ମଧ୍ଯ ପଣା ପ୍ରସ୍ତୁତ କରି ମାଆଙ୍କୁ ଅର୍ପଣ କରନ୍ତି । ଚୈତ୍ର ମଙ୍ଗଳବାର ଓଷାରେ ଚୈତ୍ର ମାସର ପ୍ରତ୍ୟେକ ମଙ୍ଗଳବାର ଦିନ ସ୍ତ୍ରୀ ଲୋକମାନେ ଦାଣ୍ଡରେ ଗୋବର ଲିପି ତହିଁରେ ଶାଳପତ୍ରର ଚଉପତି ଉପରେ ପଣା ଭୋଗ ଅର୍ପଣ କରନ୍ତି । ସେହି ସ୍ଥାନକୁ ଧୂପ ଦୀପ ଓ ଫୁଲ ଦ୍ୱାରା ସଜେଇ ମା ମଙ୍ଗଳାଙ୍କର ପୂଜା କରିଥାଆନ୍ତି । ସେମାନେ ଉକ୍ତଦିନ ସଂପୂର୍ଣ୍ଣ ଉପବାସ ରହିଥାଆନ୍ତି । ଏମିତିକି ଏହି ସ୍ତ୍ରୀମାନେ ବର୍ଷସାରା ମଙ୍ଗଳବାର ଦିନ ଉପବାସ କରନ୍ତି । ମା'ମଙ୍ଗଳାଙ୍କର ଆଶୀର୍ବାଦ ସଦା ପରିବାରରେ ରହୁ ଏହି ଉଦ୍ଦେଶ୍ୟ ରଖି ଓଡିଶାର ପୁରପଲ୍ଲୀର ଅନେକ ପରିବାର ମଙ୍ଗଳବାର ଦିନ ଆମିଷ ବର୍ଜନ କରନ୍ତି ଏବଂ ଅରୁଆ ଅନ୍ନ କାଇବାକୁ ପସନ୍ଦ କରନ୍ତି।

### II. ବୁଧେଇ ଓଷା-

ଏହି ଓଷାର ଆରାଧଦେବୀ ମା' ସିଦ୍ଧ ମଙ୍ଗଳା । ମଙ୍ଗଳା ଓଷା ପରି ଏହି ଓଷାର ପ୍ରଚଳନ ଓଡିଶାରେ ବହୁଳ ମାତ୍ରାରେ ନଥିଲେ ମଧ୍ଯ ଉପକୂଳବର୍ତ୍ତୀ ଅଂଚଳ ମାନଙ୍କରେ ଏହି ଓଷାର ପ୍ରଚଳନ ଦେଖା ଦେଇଥାଏ । ଭାଦ୍ରବ ମାସରେ ପ୍ରତ୍ୟେକ ବୁଧବାର ଦିନ ଏହି ଓଷା ପାଳିତ ହୋଇଥାଏ । ଏହି ଦିନ ସ୍ତ୍ରୀ ଲୋକମାନେ ପ୍ରାତଃ ସ୍ନାନ ସାରି ମା'ମଙ୍ଗଳାଙ୍କ ଘଟସ୍ଥାପନ କରି ସେଥିରେ ମନ୍ଦାରଫୁଲାଦି ଦ୍ୱାରା ସଜ୍ଜିତ କରନ୍ତି । ଧୂପ ଅରୁଆ ଚାଉଳ, ଦୂବ, କୋଳିପତ୍ର,ନଡିଆ କଦଳୀ ତଥା ପଣା ପ୍ରସ୍ତୁତ କରି ମାଆଙ୍କୁ ଅର୍ପଣ କରନ୍ତି । ସ୍ତ୍ରୀଲୋକମାନେ ନିର୍ଜ୍ଜଳା ଉପବାସ ରହିଥାନ୍ତି । ଏହି ଉଷାର ଉଦ୍ଦେଶ୍ୟ ହେଉଛି ସ୍ୱାମୀ,ସନ୍ତାନର ମଙ୍ଗଳ ବିଧାନ ତଥା ଐଶର୍ଯ୍ୟ ବୃଦ୍ଧି । କାହାଣୀ ଅନୁଯାଇ ଗୋଟିଏ ରାଜ୍ୟରେ ଜଣେ ରାଜାଥିଲେ । ସେ ଖୁବ୍ କ୍ରୋଧୀ ଓ ପ୍ରବଳ ପ୍ରତାପୀ । ରାଜା ହିସାବରେ ନିଜର କର୍ତ୍ତବ୍ୟ ସଂପାଦନା ନକରି ସେ ପ୍ରଜାମାନଙ୍କୁ ଅକାରଣରେ ଖୁବ୍ କଷ୍ଟ ଓ ନିର୍ଜାତନା ଦେଉଥିଲେ । ବିନା ଦୋଷରେ ରାଜାଙ୍କର ରୋଷର ଶିକାର ହୋଇଥିଲେ ରାଜ୍ୟର ଜଣେ ସାଧବ । ନିଜର ବୁଦ୍ଧି,ବିବେକ ଓ ଜ୍ଞାନଦ୍ୱାରା ସେ ଖୁବ୍ ପ୍ରତିପତ୍ତିଶାଳୀ ଥିଲେ । ସେ ସେହି ରାଜ୍ୟର ରାଜାଦ୍ୱାରା ହେଲା ନିର୍ଯ୍ୟାତିତ ଓ ଅତ୍ୟାଚାରିତ । ଏଥିରେ ରାଜାଙ୍କର କ୍ରୋଧ ପ୍ରଶମିତ ହୋଇନଥାଏ । ସେ ସାଧବ ଓ ତାର ପୁଅମାନଙ୍କର କଲେ ଶିରଚ୍ଛେଦନ । ସାଧବାଣୀ ରାଜାଙ୍କ ଅତ୍ୟାଚାର ଓ କ୍ରୁରତାରୁ ମୁକ୍ତି ପାଇଁ ମା'ମଙ୍ଗଳାଙ୍କୁ ଆରାଧନା କଲା । ସାଧବାଣୀର ନିଷ୍ଠାପର ଭକ୍ତି ଓ ଉପାସନାରେ ପ୍ରସନ୍ନ ହୋଇ ମା'ମଙ୍ଗଳା ସାଧବାଣୀକୁ ବର ପ୍ରଦାନ କଲେ । ସାଧବାଣୀ ତାର ସ୍ୱାମୀ, ସମସ୍ତ ସନ୍ତାନ ତଥା ପୂର୍ବ ଐଶର୍ଯ୍ୟ ମା'ଙ୍କ ଆଶୀର୍ବାଦରୁ ଫେରିପାଇଲା । ଏହି ପ୍ରଭାବଶାଳୀ କାହାଣୀରେ ଆକୃଷ୍ଟ ହୋଇ ଉତ୍କଳୀୟ ଅଧିକାଂଶ ନାରୀମାନେ ବୁଧେଇ ଓଷା ପାଳନ କରିଥାଆନ୍ତି ।

### III. ଖୁଦୁରୁକୁଣୀ ଓଷା

ଏହି ଖୁଦୁରୁକୁଣୀ ଓଷାର ଆରାଧାଦେବୀ ମଧ୍ଯ ମା'ମଙ୍ଗଳା । ଓଡିଶାରେ ଏହି ଉଷାର ପ୍ରଚଳନ ବହୁଳ ମାତ୍ରାରେ ହୋଇଥାଏ । ଏହି ଉଷାକୁ ମୁଖ୍ୟତଃ କୁମାରୀକନ୍ୟାମାନେ ପାଳନ କରିଥାନ୍ତି । କିଛି କୂଳବଧୂ ମଧ୍ଯ ଏହି ଉଷାକୁ ନିଷ୍ଠାର ସହିତ ପାଳନ କରିଥାନ୍ତି । ଏହି ଉଷାର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଭାଇର ମଙ୍ଗଳ ବିଧାନ । ବୁଧେଇ ଓଷା ପରି ଏହି ଓଷାକୁ ମଧ୍ଯ ଭାଦ୍ରବ ମାସରେ ପାଳନ କରାଯାଏ । ମାତ୍ର ଭାଦ୍ରବ ମାସର ରବିବାର ସନ୍ଧ୍ୟା ଏହାର ପ୍ରକୃଷ୍ଟ ସମୟ । ଏହି ମାସର ପ୍ରତ୍ୟେକ ରବିବାର ଦିନ ଏହି ଉଷା ପାଳନ କରାଯାଏ । ମାସର ପ୍ରଥମ ରବିବାର ଦିନ ମଙ୍ଗଳାଙ୍କର ଘଟସ୍ଥାପନ ତଥା ମୃଣ୍ମୟୀ ମୂର୍ତ୍ତୀ ସ୍ଥାପନ କରି ପୂଜାରମ୍ଭ ହୁଏ ଏବଂ ଶେଷ ରବିବାର ଦିନ ମହାସମାରୋହରେ ପୂଜାର୍ଚ୍ଚନା ସାରି ଦେବୀ ବିସର୍ଜନ କରାଯାଏ । ଏହି ଓଷାକୁ ମୁଖ୍ୟତଃ କୁମାରୀ କନ୍ୟାମାନେ ପାଳନ କରିଥାନ୍ତି । କୁମାରୀମାନେ ଏକତ୍ରିତ ହୋଇ ବୁଡ ଦେଇ ନିଷ୍ଠାର ସହିତ ମା'ମଙ୍ଗଳାପୂଜା କରିଥାନ୍ତି । ମାଆ ମଙ୍ଗଳାଙ୍କ ଅଲୌକିକ ଆଶୀର୍ବାଦ ଲାଭରେ କିପରି ଜଣେ ନିର୍ଯ୍ୟାତିତ ଯୁବତୀ ତାର ହୃତଜୀବନ ଧାରାକୁ ଫେରେ ତାହା କାହାଣୀରେ ଅଛି । ଯେଉଁ କାହାଣିଟି ସହିତ ଓଡିଶାର ଆବାଳ ବୃଦ୍ଧବନିତା ପରିଚିତ । କାହାଣୀଟି ଖୁବ୍ କରୁଣ ଓ ଅତ୍ୟନ୍ତ ମର୍ମସ୍ପର୍ଶୀ । ଏହି କାହାଣିରେ ଅଛି ନୌବାପିଦ୍ୟରେ ସମୃଦ୍ଧ ଓଡିଆର ଐତିହ୍ୟ ଓ ପରମ୍ପରା । ସାଧବ ଘରର କାହାଣୀ । ସାଧବ ଘରର ଅଲିଅଳ ଝିଅ ତଅପୋଇ । କିଶୋରୀ ବୟସରେ ଯାହାର ଅଝଟଥିଲା ରୁପାରଚାନ୍ଦ ଓ ସୁନାର କୁଲେଇରେ ଖେଳିବା । ଅଲିଅଳରେ ବଢିଥିବା ତଅପୋଇର ଦୁଃଖବଢେ ତାର ସାତ ଭାଇ ବାଣିଜ୍ୟ କରିବାକୁ ଚାଲିଗଲା ପରେ । ସାତ ଭାଉଜରର ଅଲିଅଳ ନଣନ୍ଦଥିବା ଗେହ୍ଲୀ ତଅପୋଇ ଜଣେ ବୁଢୀର ପ୍ରରୋଚନାର ଶିକାର ହୋଇ କେବଳ ସାନ ଭାଉଜଙ୍କୁ ଛାଡିଦେଲା ପରେ ଅନ୍ୟ ଭାଉଜମାନଙ୍କ ଦ୍ୱାରା ଖୁବ୍ ନିର୍ଯ୍ୟାତିତ ହୁଏ । ବଡ ଭାଉଜର ପ୍ରିୟ ଛେଳି ଘରମଣୀକୁ ଜଙ୍ଗଲରେ ହଜାଇ ଦେଇ ଅତୁରରେ ଖୁବ୍ କାନ୍ଦେ । ଅନେକ ଦୁଃଖ ନିର୍ଯ୍ୟାତନା

ସହି ସେ ମା'ମଙ୍ଗଳାଙ୍କର ହୁଏ ଶରଣାପନ୍ନ । ଖୁଦରେ ଭୋଗ ଲଗାଇ ମା'ଙ୍କୁ କରେ ନିଷ୍ଠାର ସହ ନିରାଜନା । ମାଙ୍କର ଆଶୀର୍ବାଦରୁ ବିଦେଶରୁ ଭାଇମାନେ ଆସିଛନ୍ତି । ତଅପୋଇର ସବୁ ଦୁଃଖ ଦୂର ହୋଇ ପୁନର୍ବାର ତାର ସୁଖ ଫେରିଛି । ଭାଇମାନଙ୍କର ମଙ୍ଗଳ କାମନା କରି କୁମାରୀମାନେ ଏହି ଓଷା ପାଳନ କରିଥାନ୍ତି । ମା'ଙ୍କ ପାଖରେ ଖୁଦ ଭୋଗ ଲାଗୁଥିବାରୁ ଏହି ଓଷାକୁ ଖୁଦୁରୁକୁଣୀ ଓଷା କୁହାଯାଇଥାଏ ।

### IV. ଦ୍ୱିତୀୟା ଓଷା/ ପୁଅ ଜୀଉଁତିଆ ଓଷା

ଓଡିଶାର ଉପକୂଳ ବର୍ତ୍ତୀ ଅଂଚଳରେ ବହୁଳ ପାଳିତ ଏହି ଓଷାର ନାମ ଦ୍ୱିତୀୟା ଓଷା । ପଶ୍ଚିମ ଓଡିଶାର ଏହି ଓଷାକୁ ପୁଅ ଜୀଉଁତିଆ ଓଷା ଭାବରେ ପାଳନ କରିଥାନ୍ତି । ଏହାର ଆରାଧନା ଦେବୀ ହେଉଛନ୍ତି- ମା' ମଙ୍ଗଳା । ଏହି ଓଷାଟି ଆଶ୍ୱିନ ମାସ କୃଷ୍ଣପକ୍ଷ ଅଷ୍ଟମୀ ତିଥିରେ ପଡିତାଏ । ଭୁଆଷୁଣୀମାନେ ଅର୍ଦ୍ଧରାତ୍ରରେ ବିଭିନ୍ନ ପ୍ରକାର ପନିପରିବା ଦେଇ ମାଙ୍କୁ ପୂଜାକରିଥାନ୍ତି । ପରଦିନ ଏହି ପନିପରିବାର ମିଶ୍ରଣରେ ଏକ ଘାଣ୍ଟ ପ୍ରସ୍ତୁତ ହୋଇଥାଏ ଏବଂ ଏହାକୁ ସଭିଏଁ ଆନନ୍ଦରେ ଖାଇଥାନ୍ତି ।

### V. ଭାଇ ଜିଉଁତିଆ ଓଷା

ଭାଇମାନଙ୍କର ମଙ୍ଗଳ ମନାସୀ ଭଉଣୀମାନେ ସାଧାରଣତଃ ଏହି ବ୍ରତ ପାଳନ କରିଥାନ୍ତି । ଏହି ବ୍ରତର ଆରାଧ୍ୟା ଦେବୀ ହେଉଛନ୍ତି ମା'ଦୁର୍ଗା । ଆଶ୍ୱିନ ମାସ ଶୁକ୍ଳପକ୍ଷ ଅଷ୍ଟମୀ ତିଥିରେ ଏହି ଓଷା ପାଳନ କରାଯାଏ । ପ୍ରଚଳିତ ଲୋକକଥାକୁ ଆଧାର କରି ସାରଳା ଦାସ ମହାଭାରତରେ ଏହି ଓଷାର ଅବତାରଣ କରିଛନ୍ତି । କାହାଣୀ ଅନୁସାରେ ଦ୍ରୌପଦୀ ମା ଦୁର୍ଗାଙ୍କୁ ଉପାସନା କରି ଭାଇ ଶ୍ରୀଖଣ୍ଡୀର କିପରି ଶକ୍ତି ବୃଦ୍ଧି କରାଇ ପାରିଥିଲେ ଏହି କାହାଣୀରେ ନିହିତ ଅଛି । ଭାଇ ଜିଉନ୍ତିଆ ଓଷା ପଶ୍ଚିମ ଓଡିଶାର ମୁଖ୍ୟତଃ ବହୁଳ ପରିମାଣରେ ପାଳିତ ହେଉଥିବାର ଲକ୍ଷ କରାଯାଇଥାଏ ।

ସେହି ପରିଭାବରେ ଉତ୍କଳୀୟ ସାମାଜିକ ଜୀବନର ପରମ୍ପରାରେ ଅନେକ ବ୍ରତ ପାଳନ କରାଯିବାର ଦେଖା ଯାଇଥାଏ । ବ୍ୟକ୍ତିଗତ କାରଣ ତଥା ପରିବାର ଆତ୍ମୀୟ ସ୍ୱଜନର ମଙ୍ଗଳ ମନାସୀ ଏହି ବ୍ରତ ସବୁ ପାଳନ କରାଯାଏ । ପ୍ରତ୍ୟେକ ବ୍ରତ ଆଢୁଆଳରେ ଏକ ଆକର୍ଷଣୀୟ ଲୋକକଥା ଓ ଅଲୌକିକ ଦେବୀ ଶକ୍ତିର ବର୍ଣ୍ଣନା କରାଯାଇଥାଏ । କିଛି କାହାଣୀ ଗଦ୍ୟ ତଥା କିଛି କାହାଣୀ ପଦ୍ୟ ଆଧାରିତ ।

### VI. ଗୁରୁବାର ବ୍ରତ

ଗୁରୁବାର ବ୍ରତ ସାଧାରଣତଃ ମାଆ ଲକ୍ଷ୍ମୀଙ୍କ ଉଦଦେଶ୍ୟରେ ପାଳନ କରାଯାଏ । ଏହି ଗୁରୁବାର ବ୍ରତ ବିଭିନ୍ନ ପ୍ରକାରର । ମାଣବସା ଗୁରୁବାର(ଧାନମାଣକିଆ), ଚାତୁର୍ମାସ୍ୟା ଗୁରୁବାର ଓ ସାଧାରଣ ଗୁରୁବାର । ମାର୍ଗଶିର ମାସ ଗୁରୁବାରକୁ ଏହି ବ୍ରତ ପାଳନର ଶ୍ରେଷ୍ଠ ଦିନ ଭାବରେ ଗ୍ରହଣ କରାଯାଇଥାଏ । ଏକ ପ୍ରଚଳିତ ପୁରାଣ ଲୋକ କଥାକୁ ଆଧାର କରି ବଳରାମ ଦାସଙ୍କ ରଚିତ "ଲକ୍ଷ୍ମୀ ପୁରାଣ" ଏହି ଗୁରୁବାର ବ୍ରତର ମୁଖ୍ୟ ଉପଜୀବ୍ୟ । ନାରୀଶକ୍ତିକୁ ଗୁରୁତ୍ୱ ଓ ଲକ୍ଷ୍ମୀଙ୍କର ମହିମାର ପ୍ରଚାର ଏହି ବ୍ରତର ମୂଳ ଉଦ୍ଦେଶ୍ୟ । ପ୍ରତ୍ୟେକ ଓଡିଆଣୀ ଘରର ଶ୍ରୀବୃଦ୍ଧି ନିମିତ୍ତ ଏହି ଗୁରୁବାର ବ୍ରତ ପାଳନ କରିଥାନ୍ତି । ଉତ୍କଳୀୟ ନାରୀମାନେ ସାଧାରଣତଃ ଗୁରୁବାର ଦିନ ଉପବାସ ରହିଥାନ୍ତି । ଏପରିକି ପ୍ରାୟ ଓଡିଆ ଘରେ ଗୁରୁବାର ଦିନ ଆମିଷ ଖାଇବା ନିଷେଧ ହୋଇଥାଏ ।

ଲକ୍ଷ୍ମୀ ପୁରାଣର କଥାବସ୍ତୁ ଅନୁସାରେ ଜନୈକ ଚଣ୍ଡାଳୁଣୀ ଯାହାର ନାମ ଶ୍ରୀୟା । ତାର ଭକ୍ତିରେ ପ୍ରୀତ ହୋଇ ମା ଲକ୍ଷ୍ମୀ ମାର୍ଗଶିର ମାସର ଶେଷ ଗୁରୁବାର ଦିନ ତାର ଘରେ ବିଜେ ହୋଇ ଭୋଗ ଗ୍ରହଣ କରିଛନ୍ତି । ଏଥିରେ କ୍ଷୁବ୍ଧ ହୋଇଛନ୍ତି ଜଗନ୍ନାଥଙ୍କ ବଡଭାଇ ବଳରାମ । ବଳରାମଙ୍କ ଆଦେଶରେ ଜଗନ୍ନାଥ ଲକ୍ଷ୍ମୀଙ୍କୁ ପରିତ୍ୟାଗ କରିଛନ୍ତି ଏବଂ ଶ୍ରୀମନ୍ଦିରରୁ ବାହାର କରିଦେଇଛନ୍ତି । ଲକ୍ଷ୍ମୀ ଶ୍ରୀମନ୍ଦିର ଛାଡି ଚାଲିଯିବା ପରେ ଦୁଇଭାଇ ଲକ୍ଷ୍ମୀଛଡା ହୋଇ ଯାଇଛନ୍ତି ଏବଂ ଶ୍ରୀମନ୍ଦିର ଶ୍ରୀହୀନ ହୋଇ ପଡିଛି । ଶ୍ରୀକୋଠ ଭଣ୍ଡାର ଶୂନ୍ୟ ହୋଇଯାଇଛି । ଶ୍ରୀମନ୍ଦିରରୁ ସମସ୍ତଧନ ଧାନ୍ୟ ଉଭେଇ ଗଲାପରେ ଦୁଇଭାଇ ଦାଣ୍ଡର ଭିକାରୀ ପାଲଟି ଯାଇଛନ୍ତି, ଖାଇବା ଉଭେଇ ଯାଇଛି ପିଇବାକୁ ପାଣି ପାଇନାହାଁନ୍ତି । ଶେଷରେ ସେମାନେ ଚଣ୍ଡାଳୁଣୀ ରୂପୀ ଲକ୍ଷ୍ମୀଙ୍କ ଘରୁ ଖାଦ୍ୟ ଖାଇ କ୍ଷୁଦ୍ଧା ନିବାରଣ ପରେ ସ୍ୱିକାର କରିଛନ୍ତି ବାସ୍ତବରେ ସକଳ ଐଶ୍ୱର୍ଯ୍ୟର ଅଧିକାରିଣୀ ହେଉଛନ୍ତି ଲକ୍ଷ୍ମୀ । ଜଗନ୍ନାଥ ଲକ୍ଷ୍ମୀଙ୍କ ପାଖରେ କ୍ଷମା ମାଗିଛନ୍ତି ଶ୍ରୀମନ୍ଦିରକୁ ଫେରିଯିବାକୁ ଅନୁରୋଧ କରିଛନ୍ତି । ମାତ୍ର ଲକ୍ଷ୍ମୀ ସର୍ତ୍ତରେ ରାଜି ହେଲେ ଫେରିବେ ବୋଲି କହିଛନ୍ତି । ଏହାର ବର୍ଣ୍ଣନା ଲକ୍ଷ୍ମୀ ପୁରାଣରେ ଖୁବ୍ ସୁନ୍ଦର ଭାବରେ ହୋଇଅଛି-

ଚଣ୍ଡାଳ ବ୍ରାହ୍ମଣ ଯାଏ ଖୁଆ ଖୋଇ ହେବେ,<br>
ସମସ୍ତେ ଖାଇବା ହସ୍ତ ଜଳେ ନ ଧୋଇବେ,<br>
ହାଡିର ହସ୍ତୁ ବ୍ରାହ୍ମଣ ଛଡାଇ ଖାଇବ,<br>
ବ୍ରାହ୍ମଣ ଖାଇ ହସ୍ତକୁ ମୁଣ୍ଡରେ ପୋଛିବ,<br>
ଅନ୍ନଖାଇ ସର୍ବେ ମୁଣ୍ଡେ ପୋଛୁଥିବେ ହସ୍ତ,<br>
ତେବେ ବଡ ଦେଉଳକୁ ଯିବି ଜଗନ୍ନାଥ ।

### VII. ଦୁର୍ଗାଷ୍ଟମୀ ବ୍ରତ-

ଏହି ବ୍ରତର ଆରାଧ୍ୟା ଦେବୀ ହେଉଛନ୍ତି ମା ଦୁର୍ଗା । ଦୁର୍ଗାପୂଜାର ଅଷ୍ଟମୀ ଦିନ ଏହି ବ୍ରତ ପାଳନ କରାଯାଏ । ଏହି ବ୍ରତର ଆଢୁଆଳରେ ମଧ୍ୟ ଏକ କାହାଣୀ ନିହିତ ଅଛି । ଯେଉଁଥିରେ ବ୍ରତ ପାଳନର ମାହାତ୍ମ୍ୟ ବର୍ଣ୍ଣନା କରାଯାଇଛି । ଦୁର୍ଗାଷ୍ଟମୀ ବ୍ରତ କଥା ଅନୁସାରେ ସତ୍ୟ

ଯୁଗରେ ରାଜା ଅନନ୍ତ ସିଦ୍ଧି ଓ ବ୍ରାହ୍ମଣ ଶେଖର ସେନ ଦୁର୍ଗାଷ୍ଟମୀ ବ୍ରତ ପାଳନ କରି ମା'ଦୁର୍ଗାଙ୍କର ଆଶୀର୍ବାଦରୁ ସ୍ୱଦେହରେ ଶିବଲୋକକୁ ଗମନ କରିଥିଲେ । ଆହୁରି ମଧ୍ୟ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମ ଚନ୍ଦ୍ର ସମୁଦ୍ରବେଳାରେ ଦୁର୍ଗା ପୂଜାକରି ଲଙ୍କାର ରାଜା ରାବଣଙ୍କୁ ବଧ କରି ସୀତାଙ୍କୁ ଉଦ୍ଧାର କରିଥିଲେ ।

### VIII. ସିଦ୍ଧ ତାରିଣୀବ୍ରତ

ଜଗନ୍ନାଥଙ୍କର ନଅଦିନ ବ୍ୟାପି ପାଳିତ ହେଉଥିବା ରଥଯାତ୍ରାର ମଙ୍ଗଳବାର ଦିନରେ ସିଦ୍ଧ ତାରିଣୀ ବ୍ରତ ପାଳନ କରାଯାଏ । ଏହି ବ୍ରତର ଉପାସନା ଦେବୀ ହେଉଚନ୍ତି ମାଆ ପାର୍ବତୀ । ଏହି ବ୍ରତର କାହାଣୀରେ କୋମଳ ହୃଦୟା ଦୟାମୟୀ ମା ଦୁର୍ଗାଙ୍କର ଅପାର ମହିମା ବର୍ଣ୍ଣିତ । କାହାଣୀ ଅନୁଯାଇ ଜନୈକ ଗରିବ ବ୍ରାହ୍ମଣ ଯାହାର କୌଣସି ସନ୍ତାନ ସନ୍ତତି ନଥିଲେ ସେ ରଥଯାତ୍ରା ଦେଖିବା ପାଇଁ ଆସି ଅନେକ ବିପଦର ସମ୍ମୁଖିନ ହୋଇଛନ୍ତି । ଦରିଦ୍ର ଦୁଃଖ ଦୁର୍ଦ୍ଦଶା ଯନ୍ତ୍ରଣାର ଦିନ କାଟୁଥିବା ଏହି ବ୍ରାହ୍ମଣର ଦୁଃଖକୁ ଦେବୀ ପାର୍ବତୀ ସହ୍ୟକରି ପାରିନାହାଁନ୍ତି । ମା ଦୁର୍ଗା ବ୍ରାହ୍ମଣଙ୍କୁ ସିଦ୍ଧ ତାରିଣୀ ବ୍ରତ ପାଳନ କରିବାକୁ ଉପଦେଶ ଦେଇଛନ୍ତି । ବ୍ରତ ପାଳନ କରି ବ୍ରାହ୍ମଣ ସମସ୍ତ ଦୁଃଖ ଦୁର୍ଦ୍ଦଶାରୁ ମୁକ୍ତ ହୋଇଛି ।

### IX. କାଞ୍ଜିଅଁଳା ବ୍ରତ

ଏହି ବ୍ରତର ଆରାଧ୍ୟା ଦେବୀ ହେଉଛନ୍ତି ଷଷ୍ଠୀ ଠାକୁରାଣୀ । କାଞ୍ଜିଅାଁଳା ବ୍ରତ ମୁଖ୍ୟତଃ ସ୍ତ୍ରୀ ଲୋକମାନେ ନିଜ ସନ୍ତାନ ମାନଙ୍କର ମଙ୍ଗଳ କାମନା ନିମିତ୍ତ କରିଥାନ୍ତି । ଏକ ଲୋକକାହାଣୀ ଅନୁସାରେ ଜଣେ ସାଧବବୋହୁର ଦୁଃଖପୂର୍ଣ୍ଣ କାହାଣୀର କଥା ବର୍ଣ୍ଣନା କରାଯାଇଛି । ଅନ୍ତସତ୍ତ୍ୱାଥିବା ସାଧବାଣୀ ଜଣେ ମାଳୀ ବାଡ଼ିରୁ ପାଣି କଖାରୁ ଚୋରୀକରି ଖାଇଛି । ଫଳରେ ମାଳି ଅଭିଶାପ ଦେଇଛି । ମାଳିର ଅଭିଶାପ ଅନୁସାରେ ସାଧବ ବୋହୁର ପାଞ୍ଚୋଟି ପୁଅ ଜନ୍ମ ହେବା ପରେ ମୃତ୍ୟୁବରଣ କରିଛନ୍ତି । ଫଳରେ ତାର ଶାଶୁ ତାକୁ ଅଲକ୍ଷଣୀ କହି ଘରୁ ବିତାଡିତ କରିଛି । ଘରୁ ବିତାଡିତ ହୋଇ ସାଧବାଣୀ ଘୋର ଅରଣ୍ୟରେ ଏକ କାଠ କଣ୍ଢେଇର ପୁତ୍ର ଜନ୍ମ ଦେଇଛି । ଏହି କାଠ କଣ୍ଢେଇ ପୁତ୍ରକୁ ଧରି ସେ ବିକଳରେ ଅନେକ କାନ୍ଦିଛି । ତାର ଏହି ବିକଳତା ଓ ଦୁଃଖକୁ ଦେଖି ସହ୍ୟ ନକରିପାରି ମା ଷଷ୍ଠୀ ଦେବୀ ତା ସେ ମୃତ ସମସ୍ତ ସନ୍ତାନ ଓ କାଠ କଣ୍ଢେଇ ପୁତ୍ର ଜୀବନ୍ୟାସ ଦେଇଛନ୍ତି । ଏହି ଷଷ୍ଠୀ ଦେବୀ ସାଧବ ବୋହୁକୁ କାଞ୍ଜିଅାଁଳା ବ୍ରତ ପାଳନ ନିମିତ୍ତ ଉପଦେଶ ଦେଇଛନ୍ତି । ସାଧବ ବୋହୁ ମା'ଙ୍କର ନିର୍ଦ୍ଦେଶ ମାନି ଏହିବ୍ରତ ପାଳନ କରିଛି ।

### X. ବଜ୍ରମହାକାଳି ବ୍ରତ ଫୁଲେରୀ ଓଷା-

ଏହି ବ୍ରତର ଅଧିଷ୍ଠାତ୍ରୀ ଦେବି ହେଉଛନ୍ତି ଦେବୀ ବଜ୍ରକାଳୀ । ଆଶ୍ୱିନ ମାସର ଅମାବାସ୍ୟା ଦିନ ଏହି ବ୍ରତ ପାଳନ କରାଯାଏ । କାହାଣୀ ଅନୁସାରେ ସାଧବ ଘରର ସାନବୋହୂ ମା ବଜ୍ରକାଳୀଙ୍କର ନିତ୍ୟ ଆରାଧନା କରୁଥାଏ । ଏହାକୁ ଦେଖି ସହି ପାରନ୍ତି ନାହିଁ ସାଧବ ଘରର ଅନ୍ୟ ବୋହୂମାନେ । ସେମାନେ ଈର୍ଷାନ୍ୱିତ ହୋଇ ସାନ ବୋହୂକୁ ଅନେକଦୁଃଖ ଓ କଷ୍ଟ ଦିଅନ୍ତି । ଆକ୍ରୋଶର ଶିକାର ହୋଇ ସାନବୋହୂର ପୁତ୍ରମାନେ ମୃତ୍ୟୁ ବରଣ କରନ୍ତି । ଶେଷରେ ସାନବୋହୂ ମା'କାଳୀଙ୍କର ବ୍ରତ ପାଳନ କରି ମୃତ ପୁତ୍ରମାନଙ୍କୁ ପାଇବା ସହିତ ଐଶ୍ୱର୍ଯ୍ୟର ଅଧିକାରିଣୀ ହୋଇଛନ୍ତି । ଏହି ବ୍ରତର ଉଦ୍ଦେଶ୍ୟ ମୁଖ୍ୟତଃ ପୁତ୍ର ତଥା ଐଶ୍ୱର୍ଯ୍ୟ କାମନା ।

### XI. ସାବିତ୍ରୀ ବ୍ରତ-

ଓଡିଶାର ବହୁଳ ପ୍ରଚଳିତ ବ୍ରତ ପରମ୍ପରା ଅନ୍ୟତମ ଶ୍ରେଷ୍ଠ ବ୍ରତ ହେଉଛି ସାବିତ୍ରୀ ବ୍ରତ । ଏହା ଜ୍ୟୋଷ୍ଠ ମାସର ଅମାବାସ୍ୟା ଦିନ ପାଳିତ ହୁଏ । ଏହି ବ୍ରତ ପାଳନ ସଂପର୍କିତ କାହାଣିଟି ସହିତ ଓଡିଶାର ପ୍ରତ୍ୟେକ ମଣିଷ ସମ୍ପର୍କିତ । ରାଜନନ୍ଦିନୀ ସତୀ ସାବିତ୍ରୀ ନିଜର ସତୀତ୍ୱ ଓ ବୁଦ୍ଧିମତା ବଳରେ କିଭଳି ସ୍ୱାମୀ ସତ୍ୟବାନଙ୍କୁ ଯମଙ୍କଠାରୁ ମୁକ୍ତ କରି ପାରିଥିଲେ ତାହା କାହାଣୀରେ ବର୍ଣ୍ଣିତ । ସାବିତ୍ରୀ ସ୍ୱାମୀର ଭବିଷ୍ୟତ ସଂପର୍କରେ ଖୁବ୍ ସଚେତନ ଥିଲା । ସେ ଜାଣିଥିଲା ନିର୍ଦ୍ଦିଷ୍ଟ ଦିନ ସ୍ୱାମୀ ମୃତ୍ୟୁ ହେବ । ତେଣୁ ସେଦିନ ଉପନୀତ ହେବା ମାତ୍ରେ ସେ ସ୍ୱାମୀ ସହିତ ଜଙ୍ଗଲକୁ କାଠ ସଂଗ୍ରହ କରିବା ପାଇଁ ଯାଇଛି । ସେଠାରେ ଏକ ବିଶାକ୍ତ ସାପ ଦଂଶନ ଦ୍ୱାରା ସ୍ୱାମୀର ମୃତ୍ୟୁ ହୋଇଛି । ମାତ୍ର ବିଚଳିତ ନହୋଇ ସାବିତ୍ରୀ ସତ୍ୟବାନକୁ କୋଳରେ ଶୁଆଇ ଦେଇଛି । ଜଣେ ମହାସତୀ କୋଳରୁ ସତ୍ୟବାନର ଜୀବନକୁ ନେଇ ନପାରି ଯମ ସାବିତ୍ରୀଙ୍କୁ ବର ମାଗିବାକୁ କହିଛି । ସାବିତ୍ରୀ ଚତୁରତାର ସହିତ ବର ମାଗି ସ୍ୱାମୀଙ୍କର ଜୀବନ ଫେରି ପାଇଛି । ସାବିତ୍ରୀର ଯମଠାରୁ ସ୍ୱାମୀକୁ ମୁକ୍ତ କରିବାର ପ୍ରସଙ୍ଗକୁ ଆଧାର କରି ସ୍ୱାମୀର ମଙ୍ଗଳ ବିଧାନ ଓ ଦୀର୍ଘାୟୁ ନିମିତ୍ତ ସଧବା ସ୍ତ୍ରୀମାନେ କେବଳ ଏହି ବ୍ରତ ପାଳନ କରନ୍ତି । ଏହି ବ୍ରତର ଭୋଗ ନିମିତ୍ତ କେବଳ ଫଳମୂଳର ଆବଶ୍ୟକ ହୋଇଥାଏ । ଓଡିଶା ସାମାଜିକ ପରମ୍ପରାରେ ବାପ ଘରୁ ଶାଢୀ,ଚୁଡି,ଫଳ ଆଦି ଆସିଥିବା ସାମଗ୍ରୀରେ ସଧବା ସ୍ତ୍ରୀଟି ଏହି ବ୍ରତ ପାଳନ କରେ ।

ଏତଦ୍ ବ୍ୟତୀତ ଓଡିଆ ସମାଜରେ ଆହୁରି ଅନେକ ବ୍ରତ ଓ ଓଷା ଅଛି ଯେଉଁଥିରେ ଲୋକ କଥା ଆଧାରିତ ଶକ୍ତି ଓପାସନାର ମାହାତ୍ମ୍ୟ ବର୍ଣ୍ଣନା ହୋଇଛି । ଏହି ଓଷା ଓ ବ୍ରତକୁ ଓଡିଆ ସାମାଜିକ ପରଂପରା ଧନ,ମାନ,ପ୍ରତିଷ୍ଠା ଲାଭ ତଥା ପରିବାର ସ୍ୱାମୀ ସନ୍ତାନ ଆଦିର ମଙ୍ଗଳ ଆଶାରେ ପାଳନ କରିଥାଏ । ଏହି ବ୍ରତ ଓ ଓଷା ଗୁଡିକରେ ନିହିତ

ଥିବା କଥା ଓ କାହାଣୀ ଓଡିଶାର ଗ୍ରାମ୍ୟ ଜୀବନକୁ ଆଧାତ୍ମିକ ମାର୍ଗର ପଥ ନିର୍ଦ୍ଦେଶ କରିବା ସହିତ ଲୋକସାହିତ୍ୟକୁ ମଧ୍ୟ କରିଛି ସମୃଦ୍ଧ ।

**ସହାୟକ ଗ୍ରନ୍ଥ:**

[୧.] ମାନସିଂ, ଡ. ମାୟାଧର; 'ଓଡିଆ ସାହିତ୍ୟର ଇତିହାସ', ପ୍ରକାଶକ: ଗ୍ରନ୍ଥ ମନ୍ଦିର, ବିନୋଦ ବିହାରୀ, କଟକ-୨, ପ୍ରଥମ ସଂସ୍କରଣ -୧୯୬୭

[୨.] ଦାଶ, ଡକୁଞ୍ଜବିହାରୀ .; 'ଓଡିଆ ଲୋକଗୀତ ଓ ଲୋକ କାହାଣୀ', ମୁଦ୍ରାକର - ଶ୍ରୀ ରାମଚନ୍ଦ୍ର ଦାସ, ନବଭାରତ ପ୍ରେସ, କଟକ୨୮-, ପ୍ରଥମ ମୁଦ୍ରଣ ୧୯୯୫-୧-୧ -